ଗୀତି ନାଟ୍ୟ

# ମାଣବସା

## ମହାଲକ୍ଷ୍ମୀ ପୂଜା

କବିଚନ୍ଦ୍ର ଡକ୍ଟର କାଳିଚରଣ ପଟ୍ଟନାୟକ



ଗୀତିନାଟ୍ୟ

# ମାଣବସା

( ମହାଲକ୍ଷ୍ମୀ ପୂଜା )

ରଚନା :

କବିଚନ୍ଦ୍ର ଡା : କାଳୀ ଚରଣ ପଟ୍ଟନାୟକ

ସାର୍ଥୀ ମହଲ

ପ୍ରକାଶକ :
ଶ୍ରୀ ରାଧାଶ୍ୟାମ ମହାନ୍ତି
ସାଥୀ ମହଲ
ବିନୋଦବିହାରୀ, କଟକ-୭୫୩୦୦୨

ପ୍ରଥମ ପ୍ରକାଶ
ନୂଆଁ
୧୯୭୭

ମୁଦ୍ରାକର :
ଶ୍ରୀ ବସନ୍ତ କୁମାର ଦାଶ
ଶ୍ରୀ ସତ୍ୟନାରାୟଣ ପ୍ରେସ
ଓଡ଼ିଆବଜାର, କଟକ-୨

ମୂଲ୍ୟ : ଏକଟଙ୍କା ପଚାଶ ପଇସା

# ମାଣବସା

## ( ପ୍ରସ୍ତାବନା )

( ମିଳିତ କଣ୍ଠ ସଙ୍ଗୀତ )

ଜୟ ଜୟ ମହାଲକ୍ଷ୍ମୀ ଜଗତ ବନ୍ଦିନୀ
ବିଷ୍ଣୁ ପାଟରାଣୀ ଜୟ ସାଗର-ନନ୍ଦିନୀ ।
ଭକତିରେ ପୂଜଇ ଯେ ତୋର ପାଦ ବେନି,
ଚତୁର୍ବର୍ଗ ଫଳ ଲଭଇରେ ସେ ଜନନୀ ।
ପ୍ରସନ୍ନା ହୁଅ ଗୋ ଦେବି ! ନିବେଦନ ଘେନି,
ଜଗତ ଜନର ତୁମ୍ଭେ ଶୁଭ ପ୍ରଦାୟିନୀ,
ଜଣାଉଛୁଁ କରଯୋଡ଼ି ପଦରେ ପ୍ରଣମି ।।

---

## ପ୍ରଥମ ଦୃଶ୍ୟ

ଜଗନ୍ନାଥ ବସିଥିଲେ ! ମହାଲକ୍ଷ୍ମୀ ଆସି ପ୍ରଣାମ କଲେ)

ଜଗନ୍ନାଥ— (ଗୀତ)

ଦେବୀ ଗୋ ! ଅବେଳାରେ କାହିଁ ପାଇଁ ଗୋ
ଅବେଳାରେ କାହିଁ ପାଇଁ
ଆସି ଅଛ କେଉଁ କାରଣରେ ଆଜ
କହ କହ ମହାଦେଈ ଗୋ,
କହ କହ ମହାଦେଈ ।

ଲକ୍ଷ୍ମୀ— ଦାସୀଏ କହିଲେ ଯାଇ ହେ,
ଦାସୀଏ କହିଲେ ଯାଇ
ମୃଗୟା କାରଣେ କାଲି ପରଭାତୁଁ
ବନେ ଯିବେ ଦୁଇ ଭାଇ ହେ,
ବନେ ଯିବେ ଦୁଇ ଭାଇ ।

ଜଗନ୍ନାଥ— ସତକଥା ଅଛ କହି ଗୋ,
ସତକଥା ଅଛ କହି,
ମୃଗୟା ମାନସେ କାଲି ପ୍ରଭାତରୁ
ଯିବୁଁ ଆମେ ସାଙ୍ଗ ହୋଇ ହେ
ଯିବୁଁ ଆମେ ସାଙ୍ଗ ହୋଇ ।

ଲକ୍ଷ୍ମୀ— ମାର୍ଗଶୀର ଗୁରୁବାର ହେ,
ମାର୍ଗଶୀର ଗୁରୁବାର
ଦଶମୀରେ ଲକ୍ଷ୍ମୀ ପୂଜା କାଲି ହେବ
ଯିବି ମୁଁ ବୁଲି ନଗର ହେ
ଯିବି ମୁଁ ବୁଲି ନଗର ।
ଅନୁମତି ନେବା ପାଇଁ ହେ
ଅନୁମତି ନେବା ପାଇଁ
ଦଶମୀ ପାଳନା ଯୋଗାଡ଼ ସାରିଛୁ
ବନେ ଯିବ ତାହା ଖାଇ ହେ
ବନେ ଯିବ ତାହା ଖାଇ ।

ଜଗନ୍ନାଥ— ସୁଖୀ ହେଲି ଶୁଣି ମୁହିଁ ଗୋ
ସୁଖୀ ହେଲି ଶୁଣି ମୁହିଁ
ନଗରରେ ବୁଲି ବାହୁଡ଼ିବ ତୁମେ
ଘରେ ଘରେ ପୂଜା ପାଇ ଗୋ
ଘରେ ଘରେ ପୂଜା ପାଇ ।

( ଲକ୍ଷ୍ମୀ ପ୍ରଣାମ କରି ଚାଲିଗଲେ । ଜଗନ୍ନାଥ ତାଙ୍କୁ ବାଟ ବଳାଇଦେଲେ । )

## ଦ୍ୱିତୀୟ ଦୃଶ୍ୟ

( ଗଡ଼ ଫସରଫାଟି ଆସୁଛି । ଗାଆଁ ମୁଣ୍ଡ ଚଣ୍ଡାଳ-ଘରର ବୋହୂ ଶିଖିଆ ଗାଧୋଇ ଆସି ବାଟ କଡ଼ରେ ପଦ୍ମ ପତ୍ରରେ ବନ୍ଧା ପୁଡ଼ାଟିଏ ରଖିଦେଇ ଘରର ବାହାର ପଟ ଓଳାଉଥିଲା ଓଦା ଲୁଗାରେ । ଏତିକବେଳେ ତା'ର ଆଗ ଆଡ଼ୁ ଆସୁଛି ରମା । ଶିଖିଆ ଥୋଇଥିବା ପୁଡ଼ାପ୍ରତି ତା'ର ନଜର ନାହିଁ । ଥାଉ ପାହୁଣ୍ଡକରେ ସେ ପୁଡ଼ାକୁ ଝୁଣ୍ଟି ପଡ଼ିଥାନ୍ତା, ଏତିକିବେଳେ ଶିଖିଆ ରମାକୁ ଦେଖି କହିଲା )—

ଶିଖିଆ—ହାଁ ହାଁ, ଝୁଣ୍ଟିବ—ଝୁଣ୍ଟିବ—ଝୁଣ୍ଟିବ, ଟିକଏ ତଳକୁ ଅନାଇଁ ଆସ ।

ରମା— କଏ, ଶିଖିଆ ମାଉସୀ କନ୍ଲେ ? ଏଠେଇଁ ବାଟ କଡ଼ଟାରେ ପଦ୍ମ ପତ୍ରରେ କ ପୁଡ଼ା ବାନ୍ଧି କଏ ଥୋଇଛି ?

ଶିଖିଆ—କଏ ରମାଦେଈ କ ?

ରମା—ହଁ, ଶିଖିଆ ମାଉସୀ ! ତୁ ଏବେ ଗଡ଼ ଫସର ନ ଫାଟୁଣୁ ଦାଣ୍ଡ ଓଳଉଚୁ ?

ଶିଖିଆ—ହଁ ହେ ଦେଈ ! ପୋଖରୀକି ଗାଧୋଇ ଯାଇଥିଲି ଯେ— ଦେଖିଲି, ପଦ୍ମଫୁଲ ଫୁଟିଚି । ଆଙ୍କୁଡ଼ି ବଢ଼ାଇ ଦି'ଟା ତୋଳି ଆଣିଲି । ତାକୁଇ ପଦ୍ମ ପତ୍ରରେ ପୁଡ଼ା ବାନ୍ଧି ବାଟ ପାଖରେ ଥୋଇ ଦେଇଚି । ଦାଣ୍ଡ ଖଣ୍ଡକ ସାରି ଘରକୁ ନେବି । ଗଡ଼ ପାହିଲେ ତ—

ରମା—ଏଡ଼େ ବେଗି ଗାଧୋଇ ଯାଇଥିଲୁ କାହିଁକି ମ ?

ଶିଶୁଆ—ରାତି ପାହିଲେ ପରା ସୁଦଶାବ୍ରତ—ମାଣବସା ଗୁରୁବାର ।
ଧନ ଘରଙ୍କୁ ତ ବାର ଦୁଆର କାମ କରିବାକୁ ଯିବ । ସେଇଥି-
ପାଇଁ ରାତି ଥାଉଁ ଥାଉଁ ଗାଧୋଇ ନ ଆସିଲେ, ମାଣ ବସେଇବ
କେତେବେଳେ ? ଲକ୍ଷ୍ମୀ ପୂଜା ସାରିବ କେତେବେଳେ ?

ରମା—ତୁ ଏବେ ଲକ୍ଷ୍ମୀପୂଜା କରିବୁ ?

ଶିଶୁଆ—ଅଚ୍ଛୁଆ ଘର ବୋଲି ଦାଆଁ ଦେବତାଙ୍କୁ ମୁଣ୍ଡିଆ ମାରିବାକୁ
ମନା ? ଦ'ଟା ପଦ୍ମଫୁଲ ଆଣିଛି—ମା' ଲକ୍ଷ୍ମୀଙ୍କ ପୂଜାରେ
ଲଗେଇବ ବୋଲି ।

ରମା—ତୋର ତ ବଡ଼ ଭଗତି ଲୋ !

ଶିଶୁଆ—ଆ—କି ଭଗତି ମୁଁ ସେ ? କୋଉଥିକି ପାଏ ? ଖାଲି
ମାଆଙ୍କୁ ଡାକି, ମୁଣ୍ଡିଆ ମାରିବା କଥା । ତୁମେ କୁଆଡ଼େ ରାତି
ନ ପାହୁଣୁ ବାହାରିବ ଦେଇ ?

ରମା—ଆଲେ, ସେଇ ମାଣବସା । ବୋଉ କହିଲା, ବେଗେ ଗାଧୋଇ
ଆସିବାକୁ ଯେ—ଯାଉଚି ପୋଖରୀକି ।

ଶିଶୁଆ—ହଉ ହଉ, ଯାଅ ଦେଇ ! ମୁଁ ଯାଉଚି । ତେଣେ ଘର
ଦୁଆର ଲିପା ପୋଛା ହେଇନି ।

ରମା—ଯା, ତୋ ଭଗତି ଦେଖି ତ ମୁଁ ତାଟକା ହୋଇଯାଉଚି ।
ଯା, ଯା,—

(ଦୁହେଁ ଦୁଇ ଦିଗରେ ଚାଲିଗଲେ)

## [ତୃତୀୟ ଦୃଶ୍ୟ]

(ଦେଉଳ ଗମ୍ଭୀର ଭିତରେ ବସିଥିଲେ ଜଗନ୍ନାଥ, ପ୍ରବେଶ କଲେ ବଳଭଦ୍ର)

ବଳଭଦ୍ର— (ଗୀତ)

ଆସିଲି ମୁଁ ପଚାରିବା ପାଇଁ,
ରାତି ପାହିଆସେ ଦେଉଳ ଭିତରେ
ଲକ୍ଷ୍ମୀଙ୍କର ଦେଖା ନାହିଁ ।
ଜାଣିଛ କି ତୁମେ କାହିଁ ଯାଇଛନ୍ତି
ରହିଛନ୍ତି ଅବା କାହିଁ ? ॥ ୦ ॥

ଜଗନ୍ନାଥ—ଶୁଣିଲେ ମୋ'ଠାରୁ ମୃଗୟା ବନୋଦେ
ବନେ ଯିବା ଦୁଇ ଭାଇ,
ସୁଦଶା ନାମରେ ତାଙ୍କ ବ୍ରତ ପୂଜା—
ବିଧାନ ଦେଖିବା ପାଇଁ—
ନଗର ବୁଲି ସେ ବାହାରିବେ ବୋଲି
ଗଲେ ମୋତେ କାଲି କହି ।

ବଳଭଦ୍ର—କିନ୍ତୁ କାହାନ୍ତି ସେ ? କାଲି ଘଟଣା ତୁମେ ଜାଣ ନାହିଁ । ବଣରୁ ଫେରିବା ବାଟରେ ଗୁଳଘରଟିଏ ଦେଖିଲି । ସେଇଟି ନିଶ୍ଚୟ କୌଣସି ଅଛୁଆଁ ଲୋକର ଘର । ତା' ନୋହିଲେ ଗାଆଁ ଠାରୁ ଦୂରଛଡ଼ାରେ କି ଥାନ୍ତା । ସେଇ ଘରର ପିଣ୍ଡା ଉପରେ ଲକ୍ଷ୍ମୀ ଠିଆ ହୋଇଛନ୍ତି । ଜଣେ ସ୍ତ୍ରୀଲୋକ ତାଙ୍କ ପାଦ ଧୋଇ, ନିଜ ପିନ୍ଧା କାନରେ ପୋଛି ଦେଲା । ଲକ୍ଷ୍ମୀ ତାକୁ କଲ୍ୟାଣ କରି, ଧନ-ଜନ-ଗୋପ-ଲକ୍ଷ୍ମୀ ଲାଭ ଲାଗି ବର ଦେଲେ,

ତା'ମୁଣ୍ଡ ଦୁଇ ହାତରେ ଆଉଁଷି । ଅଛଡ ଚଣ୍ଡାଳୁଣୀ ସେ । ପାଦଧୋଇ ପୋଛି ଦେଲ ! ଲକ୍ଷ୍ମୀ ତ ସେଠାରୁ ଅଗାଧୂଆରେ ଆସୁଛନ୍ତି । ଦେଉଳକୁ ଆସି ବଟାଳବେ ସବୁ ।

ଜଗନ୍ନାଥ—ମୁଁ ତ ଏକଥା ଜାଣି ନାହିଁ ।

ବଳଭଦ୍ର—ଏବେ ତ ଜାଣିଲ । ମୋ କଥା ମାନ ସିଂହଦ୍ୱାର ମୁଦ କର । ଲକ୍ଷ୍ମୀଙ୍କର ଆଉ ଏ ଘରେ ସ୍ଥାନ ନାହିଁ ।

ଜଗନ୍ନାଥ—ତାଙ୍କୁ ଘରୁ ବାହାର କରିଦେବାଟା କଅଣ ଉଚିତ ବିଗ୍ଭର ହେବ ?

ବଳଭଦ୍ର—ଯେବେ ଅନୁଚିତ ବୋଲି କହୁଛ, ତେବେ ତୁମେ ଦୁହେଁ ଯାଇ, ଚଣ୍ଡାଳ ସାହିରେ ଘରଦ୍ୱାର କରି ରୁହ । ମୁଁ କିନ୍ତୁ ଏ ଅନାଗ୍ଭର ସହି ପାରିବ ନାହିଁ ।

ଜଗନ୍ନାଥ—ଲକ୍ଷ୍ମୀଙ୍କ ପରି ପତ୍ନୀକୁ ତ୍ୟାଗ କରିବ ବୋଲି କହୁଛନ୍ତି ?

ବଳଭଦ୍ର—ହଁ, ମୋ ଭାଇପାଇଁ କନ୍ୟା ଅଭାବ ହେବ ନାହିଁ । ତୁମେ ଯାଇ ସିଂହଦ୍ୱାରରେ ଜଗି ରହ । ଲକ୍ଷ୍ମୀଙ୍କୁ ଭିତରକୁ ଆସିବାକୁ ଦେବନାହିଁ । କହିଲି ତ, ମୁଁ ଏ ଅନାଗ୍ଭର ସହି ପାରିବ ନାହିଁ । ଯାଅ, ଆଉ ଉତ୍ତର କର ନାଇଁ । ଲକ୍ଷ୍ମୀ ଫେରୁଥିବେ—ଚଣ୍ଡାଳୁଣୀ ଘରୁ । ଶୀଘ୍ର ଯାଅ ।

ଜଗନ୍ନାଥ—ହଉ, ଯାହା ଆପଣଙ୍କର ଆଜ୍ଞା ।

---

## ଚତୁର୍ଥ ଦୃଶ୍ୟ

(ସିଂହଦ୍ୱାର, ଜଗନ୍ନାଥ ବସିଥିଲେ । ମହାଲକ୍ଷ୍ମୀ ଆସିଲେ)

ଲକ୍ଷ୍ମୀ— (ଗୀତ)

ବାଟ ଛାଡ଼, ଦୁଆରରୁ ଘୁଞ୍ଚ, ବାଟ ଛାଡ଼,
ଭୋଷଶାଳକୁ ମୁଁ ଯାଇ
ବାନ୍ଧିବ ପଗ୍ଭ ମଣୋହି
ଯାଉ ବେଗେ ଦଶମୀ ଯୋଗାଡ଼-ବାଟ ଛାଡ଼ ॥

ଜଗନ୍ନାଥ— ନଗରକୁ ବୁଲି ଯିବ ବୋଲି କହି
ଯାଇଥିଲ କାଲି କାହିଁ ?
ନ ଦେଖୁଣୁ ମୁହିଁ, ତୁମ କଥା ସବୁ
ଦେଖିଛନ୍ତି ବଡ଼ ଭାଇ ।
ଚଣ୍ଡାଳୁଣୀ ପୂଜା ଭୋଗ ଦେଇଥିଲା
ଧୋଇ ତୁମ ପାଦ ଦୁଇ,
ପିନ୍ଧା କାନରେ ସେ ପାଦ ପୋଛି ଦେଲା
ଆସିଲ ଆଶୀଷ ଦେଇ ।
ଚଣ୍ଡାଳୁଣୀ ଛୁଆଁ ଅଧୁଆ ଶାଢ଼ୀରେ
ବାହୁଡ଼ିଛ ଲାଜ ନାହିଁ ?
ବଟାଳୁଛ ତୁମେ ଘରଦ୍ୱାର ବୋଲି
ରଗି ଆଜ୍ଞା ଦେଲେ ଭାଇ—
ଯାଅ ଫେରି ଯାଅ, ଆଜି ଏ ଦେଉଳେ
ତୁମପାଇଁ ଠାବ ନାହିଁ ।

ଲକ୍ଷ୍ମୀ—ଏ କି କଥା କହୁଛ ପ୍ରଭୁ । ତୁମେ ମୋର ସ୍ୱାମୀ-ଦେବତା ।
ମନେଥିବ, ବବାହ ବେଳରେ ଗୁଆ ଛୁଇଁ ତୁମର ଶପଥ ।

ଜଗନ୍ନାଥ— ଶପଥ ?

ଲକ୍ଷ୍ମୀ—ହଁ, ଶପଥ କରିଛ ଦଶ ଦୋଷ ମୋର କ୍ଷମା କରିବ । ମନେ ନାହିଁ ପ୍ରଭୁ ? ମୋ ପିତାଙ୍କ ଆଗେ ମୋର ଦଶ ଦୋଷ କ୍ଷମା କରିବାକୁ ଶପଥ କରିନାହିଁ ତୁମେ ?

ଜଗନ୍ନାଥ—ତୁମ ପିତା ! ଯାହାଙ୍କ ଗର୍ଜ୍ଜନରେ ଦିନରାତି କାନ ତାବଧା ହେବାରୁ ମନ୍ଦିରର ବ୍ୟାପରେ ମେଘନାଦ ପାଚେରୀ ନ ତୋଳି ରହି ହେଇନାହିଁ । ତୁମେ ତ ତାଙ୍କର ଝିଅ ? ଅଛୁବ ଚଣ୍ଡାଳୁଣୀର ସେବା ପୂଜା ଗ୍ରହଣ କରି, ମନ୍ଦିରକୁ ଆସି ସବୁ ବିଟାଳିବାକୁ ବସିଛ ? ଭାଇ ଏସବୁ ଜାଣି ବଡ଼ ଅସନ୍ତୁଷ୍ଟ ହୋଇ ତମକୁ ଦୁଆର ବାସନ୍ଦ କରିଛନ୍ତି । ଆଜି ମନ୍ଦିରରେ ତୁମର ସ୍ଥାନ ନାହିଁ । ଚାଲିଯାଅ ।

ଲକ୍ଷ୍ମୀ— (ଗୀତ)

ତୁମେ ଯେବେ ମୋତେ ତ୍ୟାଗ କଲ ପ୍ରଭୁ ?
ଉଚିତ ବୋଲି ବିଚାରି,
ଅଭାଗିନୀ ଲକ୍ଷ୍ମୀ ଚାଲି ଯାଉଅଛୁ
ଅଭିଶାପ ଦେଇ ସାରି ।
ବାରବର୍ଷ ଯାଏ ନ ମିଳୁ ତୁମ୍ଭଙ୍କୁ
ଦାନା କନା ଆଦି କରି,
ଚାଲି ଯାଉଛି ମୁଁ ଭିଖାରୁଣୀ ସରି
ତୁମ୍ଭ ଆଜ୍ଞା ଶିରେ ଧରି ।
ଅଭିଶାପ ମୋର ଫଳିବ ନିଶ୍ଚୟ
ପ୍ରଣାମ ଘେନ ମୋହରି ।

(ପ୍ରଣାମ କରି ଲକ୍ଷ୍ମୀ ଚାଲିଗଲେ)

---

## ପଞ୍ଚମ ଦୃଶ୍ୟ

(ପୋଖରୀ କୂଳରୁ ଅଳ୍ପଦୂର ବାଟରେ ମାଧବୀ—ଗାଧୋଇ ସାରି ଓଦା ଲୁଗାରେ ମନ୍ଦିରକୁ ଫେରୁଛି । ମନ୍ଦିର ଆଡ଼ୁ ଆସୁଛି ମାଳତୀ)

ମାଧବୀ—ମହାଦେଈ କାଲି ସଞ୍ଜରୁ ଦେଉଳରେ ତ ନ ଥିଲେ, ପୁଣି ଆଜ ବଡ଼ ସକାଳୁ କୁଆଡ଼େ ବାହାରିଛନ୍ତି କଲେ, ଏକୁଟିଆରେ ?

ମାଳତୀ—ମୁଁ ତ କିଛି ଜାଣିନାହିଁ । ଖାଲି ଦେଖିଲି—ସାନ ଠାକୁର ଭିତର ଆଡ଼କୁ ଯାଉଛନ୍ତି । ମୁହଁ କାହିଁକି ଶୁଖିଲା ଦିଶୁଛି ।

ମାଧବୀ—କଥାଟା ଜାଣି ହଉନାହିଁ ।

ମାଳତୀ—ଚାଲିଲୁ ଦେଖିବା ।

ମାଧବୀ—ଗାଧୋଇ ବାହାରିଚୁ ପରା ?

ମାଳତୀ—ଆସିଲେ ଗାଧୋଇବ, ଚାଲ, ଆଗେ ଦେଖିବା କୁଆଡ଼େ ବାହାରିଛନ୍ତି । ଆମକୁ କାହାକୁ ତ ଡାକି ନାହାନ୍ତି ସେ ସାଙ୍ଗରେ ଯିବାକୁ ?

ମାଧବୀ—କଅଣ ଏମିତି ଘଟିଲା, କେଜାଣି ?

ମାଳତୀ—କାଲି ସଞ୍ଜରେ ତ ନଗର ବୁଲି ଯାଇଥିଲେ, ସୁଦଶା ବ୍ରତ—ତାଙ୍କ ପୂଜା ବୋଲି । ଆଜି ବଡ଼ ପାହାନ୍ତାରୁ ପୁଣି କୁଆଡ଼େ ଯାଉଛନ୍ତି ଏକୁଟିଆ ହୋଇ ? ଚାଲିଲୁ, ପଛେ ପଛେ ଯିବା, କଥାଟା ବୁଝିବା ।

ମାଧବୀ—ଚାଲ ଚାଲ, କଥା ହବାକୁ ଆଉ ବେଳ ନାହିଁ । ଚାଲି ଯାଉଛନ୍ତି ସେ ।

(ଦୁହେଁ ଚାଲିଲେ)

---

# ଷଷ୍ଠ ଦୃଶ୍ୟ

(ପୁଣି ସମୁଦ୍ର କୂଳ, ମହାଲକ୍ଷ୍ମୀ ଏବଂ ବିଶ୍ୱକର୍ମା)

ବିଶ୍ୱକର୍ମା— (ଗୀତ)

ପ୍ରଣତ ହେଉଛନ୍ତି ଦେବ ! ଚରଣ ତଳେ
କିପାଇଁ ବିଶ୍ୱକର୍ମାଙ୍କୁ ସ୍ମରଣ କଲେ ?
ହୋଇଲି ପରବେଶ
କହନ୍ତୁ କି ଆଦେଶ
ଧନ୍ୟ ମଣିବି ମୁଁ ତାହା ପାଳନ କଲେ ।

ଲକ୍ଷ୍ମୀ— (ଗୀତ)

ଆଦେଶ ବୋଲି ନ ଧର
ଏ ତ ଅନୁରୋଧ ମୋର ।
ଦେଉଳୁଁ ହୋଇ ବାହାର—ବାସ କାହିଁ ନାହିଁ ମୋର
ସାଗରତୀରରେ-ମୋ ଲଗି ଅଚିରେ
ତୋଳାଅ ଏକ ନଅର ।
ଦାସୀଗଣ ଭୁଲେ—ରହିବ ସେଠାରେ
ଏତିକ ମୋ କହିବାର ।

ବିଶ୍ୱକର୍ମା—ଅଚିରେ ନବର ସାଗର ତୀରେ ତୋଳାଇ ଦେବି ।
ବିଦାୟ ନେଉଛି ହେଉନ୍ତୁ ମୋର ପ୍ରଣତ ଦେବୀ !

(ବିଶ୍ୱକର୍ମା ପ୍ରଣାମ କରି ପ୍ରସ୍ଥାନ)

(ମାଳତୀ ଓ ମାଧବୀ ପ୍ରବେଶ କରି ଲକ୍ଷ୍ମୀଙ୍କୁ ଭୂମିଷ୍ଠ ପ୍ରଣାମ କଲେ)

ଲକ୍ଷ୍ମୀ—ମାଳତୀ, ମାଧବୀ, ତୁମେ ଦୁହେଁ ଏତେବେଳେ ଦେଉଳ ଛାଡ଼ି
କୁଆଡ଼େ ଆସିଲ ?

ମାଧବୀ— (ଗୀତ)

ଏତେ ସକାଳରୁ ମହାଦେଈ !
ଅଘଟ ଘଟଣା ଦେଖିଲୁଇଁ
ଏକୁଟିଆ କାହିଁ ବଜେ କରୁଛନ୍ତି
ସଙ୍ଗରେ ତ ଆଉ କେହି ନାହିଁ ।

ମାଳତୀ— ଗାଧୁଆ ଘାଟରୁ ଫେରୁଥିଲି
ଦେବୀଙ୍କୁ ଦୂରରୁ ନିରେଖିଲି
ମାଧବୀକୁ ଡାକି ସାଙ୍ଗରେ ଆଣି ମୁଁ
ଆସିଅଛି ତରତର ଧାଇଁ ॥
ଅଗଣନ ଦାସୀ, ପରିବାରୀ
ଅଛନ୍ତି ଯାହାର ସେବା କରି
କାହାକୁ ସଙ୍ଗରେ ନ ଡାକି ସେ ପୁଣି
ଦାଣ୍ଡେ ଦାଣ୍ଡେ ବଜେ କାଇଁ ପାଇଁ ?

ଲକ୍ଷ୍ମୀ— ବାଟଟାରେ କହିବ ମୁଁ କସ ?
ଶୁଣିବ ସବୁ ମୋ ସଙ୍ଗେ ଆସ
ତଡ଼ି ଦେଇଛନ୍ତି ଦୁଇଭାଇ ମୋତେ
ଦେଉଳେ ଆଉ ମୋ ଠାବ ନାହିଁ ॥
ଧଉଆ ବାଲିକୁ ଯିବା ଚାଲ
ଦେଖିବ ସେଠାରେ ନୂଆଘର
ଜାଣିବ, ଶୁଣିବ ଘଟିଅଛି ଯାହା
କହିବ ସକଳ ସମୁଖାଇ ।

(ସମସ୍ତେ ଚାଲିଗଲେ)

## ସପ୍ତମ ଦୃଶ୍ୟ

(ବଡ଼ଦାଣ୍ଡ, ପୂଜାପଣ୍ଡା ଚାଲି ଯାଉଥିଲେ । ପଛରୁ ତାଙ୍କୁ ମହାସୁଆର ଡାକିଲେ । )

ସୁଆର—ପୂଜାପଣ୍ଡାଏ ! ପୂଜାପଣ୍ଡାଏ ! ରହ, ରହ ଶୁଣ ଶୁଣ ଟିକିଏ ।

ପଣ୍ଡା—ସକାଳୁ ଦେଉଳ ଗୁଡ଼, ଏମିତି ଧଇଁସଇଁ ହୋଇ ପଛରୁ ଡାକ ପୁଡ଼ିଚ ? କଥା କଅଣ ?

ସୁଆର – ଆଚମ୍ବିତ କଥା । ଦେଉଳ ଶୂନ୍ । ଦିନ ଆସି ଘଡ଼ିଏ ହେଲାଣି, ଦିଅଁଙ୍କ ପହୁଡ଼ ଭାଙ୍ଗିନାହିଁ ?

ପଣ୍ଡା—(ହସି ମହାସୁଆରଙ୍କୁ ପାଖକୁ ଟାଣି ଦଲାଇ) ଆହେ ମହାସୁଆରେ ? ଟିକିଏ ମତେ ଚାହିଁଲ ଦେଖେଁ; ତୁମ ଆଖିରୁ କାଲି ରଙ୍ଗ ଛୁଟିଲାଣି କ ନାହିଁ ।

ସୁଆର—ଗୁଡ଼ ହେ, ଯାଇକରି ଦେଉଳରେ ନିଜେ ଦେଖ । ତମ ଆଖିରୁ ରଙ୍ଗ ଛୁଟିଥିଲେ-ମୋ କଥା ସତ-ମିଛ ବାଣିବ, ଆସ । (ପୂଜାପଣ୍ଡାଙ୍କୁ ଟାଣି ନେଲେ । ଏତିକି ବେଳେ ଯୋଗାଣିଆ ତରତର ହୋଇ ଆସିଲେ )

ଯୋଗାଣିଆ—କୁଆଡ଼େ ଦିହେଁ ବାହାରିଚ ? ଦେଉଳକୁ ? ଶ୍ରେଷ ଭଣ୍ଡାରକୁ ଚାଲ, ଦେଖିବ—କିଛି ଆଉ ଭଣ୍ଡାରରେ ନାଇଁ । କଅଣ ଯୋଗାଡ଼ିବ ?

ସୁଆର—ଯୋଗାଣିଆ ! କଅଣ କହୁଛ ? କାଲି ମୁଁ ସବୁ ରକମ ଧୂଆଧୋଇ କରି ସଜାଡ଼ି ରଖିଛି । ଆଜ ତୁମେ କହୁଚ କଅଣ— ନା କିଛି ନାହିଁ ? ଚାଲ, ଚାଲ ।

ପଣ୍ଡା—ଶୁଣିକରି ତ ମୁଁ ତାଟକା ହୋଇଗଲିଣି, ଚାଲ ଦେଉଳକୁ । କ ଅସମ୍ଭବ କଥା ଶୁଣୁଛି । (ସମସ୍ତେ ଚାଲିଗଲେ)

---

## ଅଷ୍ଟମ ଦୃଶ୍ୟ

(ସାଗର ବାଲିରେ ଲକ୍ଷ୍ମୀଙ୍କର ନୂଆଘର । ଲକ୍ଷ୍ମୀ ବସିଛନ୍ତି । ମାଳତୀ ଓ ମାଧବୀ ପାଖରେ ଛିଡ଼ା ହୋଇଛନ୍ତି । )

ମହାଲକ୍ଷ୍ମୀ— (ଗୀତ)

ସବୁ କଥା ଜାଣିଲ ତ ଏଥର
ଏବେ ସଜାଡ଼ ଏ ନୂଆଘର ॥

ଅଷ୍ଟବେତାଳଙ୍କୁ ଡାକି କହିଥିଲି
ଲୁଟି ଆଣିବେ ଭଣ୍ଡାର ।
ଶେଷରାକେ ପଣି ଖାଇପିଇ ଦେଇ
କରିବେ ସକଳ ଚୁର ।
ଚେଇଁଥିବେ କାଳେ ଦୁଇଭାଇ ବୋଲି
ତହିଁ ପାଇଁ ତାଙ୍କ ଡର ।
କହିବାରୁ ମୋତେ ଡାକି ଆଣିଲି ମୁଁ
ନିଦ୍ରାବତୀଙ୍କ ସତ୍ୱର ।
କହିଲି ତାହାଙ୍କୁ ଆଗୋ ନିଦ୍ରାବତୀ !
ବଡ଼ ଦେଉଳକୁ ଚଳ
ଶୋଇଥିବା ବେନି ଭାଇଙ୍କ ନୟନେ
ଭରିଦିଅ ନିଦ୍ରାଘୋର ।
ତୁମ୍ଭେ ଦୁହେଁ ବେଗେ ଦେଉଳକୁ ଯାଇ
ବାହୁଡ଼ି ଦେବ ଖବର ।
କି ହେଲା ଦେଉଳେ, କି ହେଉଛି ଏବେ
ଦୁଇ ଭାଇଙ୍କ ବିଷ୍ଣୁର ।

ମାଳତୀ—ଆଜ୍ଞା ପ୍ରମାଣେ ଆମେ ଏଇକ୍ଷଣି ଦେଉଳକୁ ଯାଉଛୁ ମହାଦେଈ ।

ମହାଲକ୍ଷ୍ମୀ—ହଁ, ଆଉ ଗୋଟିଏ କଥା ଦେଖି ଆସିବ ।

ମାଧବୀ—ଆଜ୍ଞା କରନ୍ତୁ ।

ଲକ୍ଷ୍ମୀ—ଦେଖି ଆସିବ ବଡ଼ ସାନ ଦୁଇ ଭାଇଙ୍କ ପଦ୍ମଭୂଇଁ ଘରେ ରତ୍ନପାଲଙ୍କ ବଦଳରେ ଦୁଇଟି ଦଉଡ଼ିଆ ଖଟ ପଡ଼ିଛି କି ନାହିଁ ।

ମାଧବୀ—ଯଥା ଆଜ୍ଞା ଦେବୀ !

( ଦୁହେଁ ପ୍ରଣାମ କରି ଚାଲିଗଲେ । ଅନ୍ୟ ବାଗରେ ଲକ୍ଷ୍ମୀ ଭିତରକୁ ଗଲେ । )

---

## ନବମ ଦୃଶ୍ୟ

(ମନ୍ଦିର ଅଭ୍ୟନ୍ତର, ଜଗନ୍ନାଥ ଓ ବଳଭଦ୍ର)

ବଳଭଦ୍ର—କାଲି ମନ୍ଦିରରୁ ଲକ୍ଷ୍ମୀଙ୍କୁ ବିଦାୟ ଦେବା ପରେ ବୁଲି ଦେଖୁଛି—ଭଣ୍ଡାର ଘରେ କିଛି ନାହିଁ ।

ଜଗନ୍ନାଥ—ହଁ, ଗୃହଆଡ଼ ଖାଲି ଶୂନ୍ୟ ଲାଗୁଛି ।

ବଳଭଦ୍ର—ଭୋଜନର କି ବ୍ୟବସ୍ଥା ହେବ ? ସୁଆରମାନଙ୍କର ଦେଖାନାହିଁ ।

ଜଗନ୍ନାଥ—ସେମାନେ ଥିଲେ ବା କଅଣ ପାକ କରିବେ ? ଭଣ୍ଡାର-ଘର ତ ଖାଲି । ଏମିତିକି ରାନ୍ଧିବା ବାସନ-ବର୍ତ୍ତନ ଖଣ୍ଡିଏ ମଧ୍ୟ ନାହିଁ । କେମିତି ଯେ ସବୁ କୁଆଡ଼େ ଗଲା କିଛି ଜଣାପଡ଼ୁ ନାହିଁ ।

ବଳଭଦ୍ର—ଏ ତ ବଡ଼ ଅଦ୍ଭୁତ କଥା, ତୁମେ ଖବର ନିଅ ମନ୍ଦିରରେ କିଏ କେଉଁଠି ଅଛନ୍ତି ।

ଜଗନ୍ନାଥ—ମୁଁ ଗୃହଆଡ଼ ବୁଲି ଦେଖିଲି, କେହି କେଉଁଠି ନାହାନ୍ତି । ଲକ୍ଷ୍ମୀ ଚାଲିଗଲା ପରେ ଏପରି ଦୁର୍ଘଟଣା ଘଟୁଛି ।

ବଳଭଦ୍ର—ସେସବୁ କିଛି ନୁହେଁ । ମୋ ସାଙ୍ଗରେ ଆସ । ଦେଖିବା, କଅଣ କରିବାକୁ ହେବ । ଆସ ।

(ଦୁହେଁ ଚାଲିଗଲେ)

---

## ଦଶମ ଦୃଶ୍ୟ

(ଗ୍ରାମ୍ୟ ପଥ । ନିକଟରେ ଗୋଟିଏ ଘରର ଦ୍ୱାରମୁହଁରେ ବୁଲି ଓ ସୁଲି ଦୁଇଜଣ ଗାଉଁଲି ସ୍ତ୍ରୀ ଲୋକ ଛିଡ଼ା ହୋଇଛନ୍ତି )

ବୁଲି— (ଗୀତ)

ନାନି, ଦେ'ଖ ଲୋ, କିଏ ସେ ଦି'ଜଣ ଇଏ
ଭିଖ ମାଗୁଛନ୍ତି ଦୁଆରେ ଦୁଆରେ—
ବୁଲି ବୁଲିକରି ସିଏ ॥ ୦ ॥

ସୁଲି— ହଁ, କଳା ଗୋରି ଭେଣ୍ଡା ଦି'ଜଣ
ଦିହଯାକ କେଡ଼େ ଚିକ୍କଣ
ମୋଟା ସୋଟା ହାତ, ଗୋଡ଼, ବେକ, ପିଠି
ଯୁଆଙ୍କୁ ଭଲି ଭିଖ ଦେବଟି କିଏ ?"

ବୁଲି— ନିବଳୁଆ ନୁହନ୍ତି ଦୁହେଁ
ଭିଖ ମାଗୁଛନ୍ତି କି ମୁହେଁ ?
ଗତର ଖଟାଇ, ଅରଜନ କଲେ
ସୁଖରେ ଚଳନ୍ତେ ତାଙ୍କ ପିଲାଏ ॥
ନୂଆକରି ଦେଖୁଛୁ ତାଙ୍କୁ
ଆସିଛନ୍ତି ଆମ ସାଇକୁ
ଆମ ଦୁଆରକୁ ମାଗି ଯାଇଥିଲେ
ତଡ଼ିଦେଲେ ବାପା, ବୋଉ, ସଭିଏଁ ॥

ସୁଲି—ଆଲୋ ଏ ବୁଲି ! ତୋ' ଦେଢ଼ଶୁର ଆସୁଛନ୍ତି କି କଅଣ ଲୋ ! ଚାଲ ଚାଲ-ଘରକୁ ଯିବା । (ଦୁହେଁ ଚାଲିଗଲେ)

(ପଦନ ଓ ମଦନ କଥାବାର୍ତ୍ତା ହୋଇ ଆସୁଥିଲେ ।)

ପଦନ—ହଁ, ଜାଣନ୍ତେ, ନିହାତି ବୁଢ଼ିଆ ହୋଇଛନ୍ତି କି ପ୍ରେଟା, କେମିତା ହେଉଛନ୍ତି । ଖୋଳସମରଥ ଭେଣ୍ଡିଆ ଦିଇଟା—

ମଦନ—ପଦନ ଭାଇନା, ତେମେ ଭଲ କେବେ ଏମିତ ଭିଖାରୀ ଆମ ଟାଆଁ ଭୂଇଁରେ ଦେଖିଚ ?

ପଦନ—ଆରେ, ଗ୍ରେର କ ତସ୍କର ହୋଇଥିବେ । ସମ୍ପତ୍ତି ବାଡ଼ ଦେଖି ଠଉର କରିବାକୁ ଆସିଥିବେ ରେ । ଦିନବେଳେ ଦେଖିବାକୁ ଭିଖମଗା, ରାତି ଅନ୍ଧାର ହେଲେ, ସଙ୍ଗ ଦେଖି ଖଞ୍ଜରେ ଖଞ୍ଜରେ ଧନ ସମ୍ପତ୍ତି ଲୁଟିବେ ।

ମଦନ—ମୁଁ ସେଥିରୁ ଗୋଟାକୁ କହିଲି—ଆରେ, ମୂଲ ଲାଗିବୁ ? ଆ, ମେଡ଼ହେନ୍ତନା ଦେବ । କାଲିଆ ଲୋକଟା କହିଲା, କାମ ଦାମ ତ ଜଣାନାହିଁ ।

ପଦନ—ନ, ଆଉ ଭିକମାଗିବାଟା ଜାଣନ୍ତ !

ମଦନ—ସେ ଦିଟା ନହାତି ଅଲକ୍ଷଣା ମ । କାଲି କଥା ଶୁଉଣ୍—ଆମ ଦୁଆରକୁ ଦିପହରେ ଯାଇ, କାନ୍ଦକାନ୍ଦ ହୋଇ ସେ ଗୋଗ୍ରାଟା ମୁଠେ ଖାଇବାକୁ ମାଗିଲା । ନାକୁଣୀ ମୋର ତା' ବୋଉକୁ ଯାଇ ବ୍ରାହ୍ମଣଟେ ମୁଠାଏ ଖାଇବାକୁ ମାଗୁଛି ବୋଲି କହିଲା । ଝିଅ କଥା ଶୁଣି ବୋହୂ ହାଣ୍ଡିଶାଳକୁ ଯାଇ ହାଣ୍ଡି ଦରାଣ୍ଡିବା ବେଳକୁ—ହାଣ୍ଡି ଶୂନ୍ । କବାଟଟା ଉଦୁଆଁ ଥିଲା । ମାଙ୍କଡ଼ ପଶି ଖାଇଗଲେ କ କଅଣ ଭାବ, ବୋହୂ ଓଲଟି ଝିଅକୁ ଗାଳି ଦେଲା ।

ପଦନ—ସେ ବ୍ରାହ୍ମଣ ଦିଟାଙ୍କୁ ଧାଇରୁ ତଡ଼ ମ । ହତଲକ୍ଷ୍ମୀ ଗୁରାକ ।

ମଦନ—ହଁ, ସେଇକଥା । ଚାଲ ବୁଝି ଦେଖିବା—ସେ ଯୋଡ଼ାକ ଗଲେ କୁଆଡ଼େ । ଭଲରେ ନଗଲେ, ବାଉଁଶ ଠେଙ୍ଗା ଅଛି । ଆସ, ଆସ । (ଦୁହେଁ ହସି ହସି ଗ୍ଳଗଲେ)

---

## ଏକାଦଶ ଦୃଶ୍ୟ

(ଦରିଆ କୂଳ ବାଲିରେ ଆସୁଛନ୍ତି ଗ୍ଲାନ ଗ୍ଲାନ ବଳଭଦ୍ର ଓ ଜଗନ୍ନାଥ)

ଜଗନ୍ନାଥ— (ଗୀତ)

ଦେଖ ଦେଖ ଭାଇ, ହେଉଛି କାହାର
ବଡ଼ କୋଠାଟିଏ ଧଳାଇ ।

ବଳଭଦ୍ର — ଘରୁ ଅଣ ଝର ତାତଲା ବାଲିରେ
ଆଉ ମୋ ପାଦ ନ ଚଳଇ ।
ଭୋକ ଶୋଷରେ ଉଡ଼ୁଛି ହଂସା
ମୁଠେ ଭାତର ନାହିଁ ଭରସା
ବାରଘର ବୁଲି ମାଗିଲେଁ ଯାହାକୁ
କହିଲା ସେ ଖାଲି ନାହିଁ ନାହିଁ ॥

ଜଗନ୍ନାଥ— ଆସ, କାନ୍ଧରେ ମୋ ଭର ଦେଇ
ଧରି ଧରି ନେଇଯିବ ଭାଇ !
ଆଉଣ୍ଡି ହେଲଣି ଭୋକରେ ମୋ ପେଟ
ମୁଠାଏ ଅନ୍ନକୁ ଗୁହାଁ ଗୁହାଁ ।

ବଳଭଦ୍ର— ବଡ଼-ଘର ପରି ମୋତେ ଦିଶୁଛି
ମାଗିଲେ ବା ମିଳିବ କିଛି
ଗୁଣ୍ଡୁଳ ମୁଠାଏ, ପଖାଳ ଟଣ୍ଡାଏ
ପାଇଲେ ଫୁଙ୍କାଇ ଦେବା ଖାଇ ॥

ଜଗନ୍ନାଥ— ଧୀରେ ଧୀରେ ଯାଉଣ୍ଡିକୁ ପକା
ଆଗରେ ତ ଦିଶୁଅଛି ପକ୍କା
ଆମ ଦୁଃଖ ଦେଖି କେଜାଣି କାହାର
ଦୟା ହେଲେ କିଛି ପାରେ ଦେଇ ॥

ବଳଭଦ୍ର—
କୋଠା ପାଖ ହେଲଣି ଭାଇ !
ଡାକ ଭୁହ୍ୱ ଦୁଆରେ ଯାଇ ।
ହେଇଟି ଝଣୁଛୁ—କଥା ହେଉଛନ୍ତି
ମାଇପୀ କଏ ଏଣେ ଅନାଇଁ ॥
(ଧୀରେ ଧୀରେ ଦୁହେଁ ପ୍ରସ୍ଥାନ କଲେ । )

---

## ଦ୍ୱାଦଶ ଦୃଶ୍ୟ

(ମହାଲକ୍ଷ୍ମୀଙ୍କ କୋଠାଘର ଦୁଆର ମୁହଁ । ବାହାରୁ ମାଧବୀ ଭିତରକୁ ଯିବା ବେଳକୁ ମାଳତୀ କଦଳୀପତ୍ର ଦି’ ଖଣ୍ଡ ଭିତର ଆଡ଼ୁ ନେଇ ଆସିଲା ।)

ମାଳତୀ—କଳା ଗୋରା ହୋଇ ସେ ବ୍ରାହ୍ମଣ ଦି’ ଜଣ କଏ ମ ? ସବୁ ଦେଇଛୁ ତ ତାଙ୍କୁ ?

ମାଧବୀ—ହଁ, ସଞ୍ଜାରେ ଡାଲି, ଚାଉଳ, ପନିପରିବା, ତେଲ, ଲୁଣ, ଘିଅ ଆଉ ଜାଳିବାକୁ ଫାଳିଆ କାଠ; ସବୁ ତାଙ୍କୁ ଦେଇ ଟିକଏ ଛିଡ଼ା ହେଇ ଦେଖୁଥିଲି ତାଙ୍କ ରାନ୍ଧିବା ଢଙ୍ଗ ।

ମାଳତୀ—ମୁଁ ପତର ଆଣିଛି । ରନ୍ଧାରନ୍ଧି ସରିଯିବଣି ତ ।

ମାଧବୀ—ଗୋରା ଗୋସାଇଁ ଜଣକ ପାଖରେ ଠିଆ ହୋଇଛନ୍ତି । କଳା ଜଣକ ହାଣ୍ଡିରେ ପାଣି ବସାଇ ଚୁଲି ଫୁଙ୍କି ଫୁଙ୍କି ନୟାନ୍ତ ହେଲେଣି, ଚୁଲି ଜଳିବାକୁ ନାହିଁ । ପାଣି ତାତିଲେ ସିନା ଚାଉଳ ପକାଇବେ ।

ମାଳତୀ—ଆଲୋ, କେଉଁ ଗାଆଁର ମ ସିଏ ? ବ୍ରାହ୍ମଣ ପିଲା ହୋଇ ମୂଠେ ରାନ୍ଧି ଜାଣୁ ନାହାନ୍ତି ?

ମାଧବୀ—ଆଲେ, କେମିତି ରାନ୍ଧିବେ ? ପାଣି ଫୁଟିଲେ ସିନା ଚାଉଳ ପକାଇବେ । ମୂଳରୁ ପର ଯେତେ ଫୁଙ୍କିଲେ ହେଲେ କାଠରେ ନିଆଁ ଧରିବାକୁ ନାହିଁ ବୋଲି କଳା ଜଣକ କହୁଛନ୍ତି ।

ମାଳତୀ—ତୁ ଦେଖିକରି ଦେଇନାହୁଁ କି କଅଣ ? ଓଦା କାଠ ହୋଇଥିବ ଲୋ !

ମାଧବୀ—ମଲା, ଶୁଖିଲା କାଠ ଫାଳିଆ ଗୁଡ଼ିକ । ଓଦା କିଆଁ ହୁଅନ୍ତା ମ ? ତାଙ୍କୁ ନିଆଁ ଧରେଇ ଆସୁନାହିଁ । ତୁ ଏବେ ଯାଇକରି ଦେଖିବୁ । ଆ, ଯିବୁ ଆ ।

ମାଳତୀ—ମହାଦେଈ ପରା ସେ ଦୁହିଁଙ୍କ ରନ୍ଧାରନ୍ଧି ସରିଲାଣି କି ନାହିଁ, ଦେଖି ଆସିବାକୁ କହିଥିଲେ ମତେ ! ମୁଁ ଯାଉଚି-ସବୁକଥା କହିବି ମହାଦେଈଙ୍କି ।

(ନେପଥ୍ୟେ ଗୋଟାଏ କିଛି ତଳେ କଚାଡ଼ି ହେବା ଶବ୍ଦ)

ମାଳତୀ—କଅଣଟେ ପଡ଼ିଲା ପରି ଶୁଭିଲା ! ଦେଖିଲୁ ଆଗ ।

(ମାଳତୀ ଚାଲିଗଲା ଓ ସଙ୍ଗେ ସଙ୍ଗେ ପୁଣି ଫେରି ଆସିଲା)

ମାଳତୀ—ଆଲେ ହେ ! ଯେ କି କଥା ମ ? ମହାଦେଈଙ୍କ ବ୍ରାହ୍ମଣ ନନାଙ୍କ ରନ୍ଧାବଢ଼ା କଥା କଅଣ କହିବି ? ଘିଅ ହାଣ୍ଡିଟା କଚାଡ଼ି ଦେଲେ ଯେ, କଳା ନନାଙ୍କର ହାହମୁଣ୍ଡ ପାଣି । କାହିଁକି ଏମିତି ହେଲା ? ଯେ କି ଅଲକ୍ଷଣୀ କଥା ମ ?

(ଜଗନ୍ନାଥ, ବଳଭଦ୍ର ପ୍ରବେଶ)

ମାଳତୀ—ହଇଓ ନନା ! ଘିଅ ହାଣ୍ଡିଟା କଚାଡ଼ିଲ କିଏ ? ଆଉଟାଏ ହାଣ୍ଡି ଆଣି ଦେବି ?

ଜଗନ୍ନାଥ—ଦରକାର ନାହିଁ ହାଣ୍ଡି । ଫୁଙ୍କି ଫୁଙ୍କି ତ କାଠ ଜଳିବାକୁ ନାହିଁ ।

ବଳଭଦ୍ର—କଅଣ ହେଉଛି କେଜାଣି । କଆଁ ମୋଟେ ଧରୁ ନାହିଁ । କାଠର ଦୋଷ କି ଆମର ଦୋଷ, କେଜାଣି ? ପାଣି ତ ଫୁଟିବାକୁ ନାହିଁ, ଆଉ ହାଣ୍ଡିଟେ ଆଣିଦେଲେ ବା କଅଣ ହବ ?

ଜଗନ୍ନାଥ—ସେ କଥା ନୁହଁ । ଭୋକରେ ପେଟ ଜଳି ଯାଉଛି । ଆମକୁ ମୁଠେ ଅନ୍ନ ଦିଅ । ତମର ବ୍ରାହ୍ମଣ ଘର ହଉ କି ଚଣ୍ଡାଳ ଘର ହଉ, ଜୀବନଟା ଆଗେ ରହୁ ।

ମାଧବୀ—ଆମେ ତ କିଛି କହିପାରିବୁ ନାହିଁ । ଭିତର ଆଡ଼କୁ ଯାଇ ମହାଦେଈଙ୍କ ସବୁ ସିନା କହିବ । ଆଗେ ତୁମେ ଯାଇ ଦିହ, ମୁଣ୍ଡରୁ ପାଣି ପୋଛିପାଛି ହେଇପଡ଼ । ଆମେ ଭିତର ଆଡ଼ୁ ତମ ଖାଇବା କଥା ବୁଝି ଆସୁଛୁଁ । ଯାଅ ।

ବଳଭଦ୍ର—ହଉ । (ବଳଭଦ୍ର ଓ ଜଗନ୍ନାଥ ଚାଲିଗଲେ)

ମାଳତୀ—ଆଉ ଅନେଇଁବାକୁ ବେଳ ଅଛି ? ଚାଲ ମହାଦେଈଙ୍କି ସବୁ ଖବର ଦେଇ, ପଚାରିବା । ଖାଇବାକୁ ସେ କହିଲେ ଏ ଦିହିଁଙ୍କ ପାଇଁ ଠାଆ କରିବା ।

ମାଧବୀ—ଆଲୋ, ସିବା ଯେ ଗୋଟିଏ କଥା ମନକୁ ଆସିଲା, ଶୁଣ୍—

ମାଳତୀ—କଅଣ ?

ମାଧବୀ—ଯେଉଁ ଦିହେଁ ତ ପଇତା ପକେଇଛନ୍ତି—ବ୍ରାହ୍ମଣ । ଆମ ଖିଆରେ ଖାଇବେନି ?

ମାଳତୀ—ସେଇଥିକି ପଞ୍ଝା ପରା ମାଗିଲେ, ଆପେ ରାନ୍ଧି ଖାଇବାକୁ ।

ମାଧବୀ —ରାନ୍ଧି ତ ପାରିଲେ ନାହିଁ । ଏଣେ ଭୋକରେ ପେଟ ଜଳୁଛି । କହନ୍ତି ପରା 'ପେଟ ପୋଷ—ନାହିଁ ଦୋଷ' ।

ମାଳତୀ—ସତ କହିଲୁ । ଚାଲ ଚାଲ । ମହାଦେଈଙ୍କି ଜଣାଇ ଯାଙ୍କୁ ଖାଇବାକୁ ଦେବା । ମାଗିଲେଣି ତ ସେ । (ଦୁହେଁ ଚାଲିଗଲେ)

---

## ତ୍ରୟୋଦଶ ଦୃଶ୍ୟ

(ମହାଲକ୍ଷ୍ମୀଙ୍କ ନଅର ଦ୍ୱାର)

ଜଗନ୍ନାଥ—(ଗୀତ) ଆସ ଭାଇ !
ଆଜ ଉତ୍ତର କର କାହିଁ ପାଇଁ ?
ଡାକ ଗଲାଣି ଦାସୀ
ଦେବା ପାଇଁ ପରଶି
ଅନ୍ନ ତିଅଣ ଆମ୍ଭ ପାଇଁ
ଆଜ ବଗ୍ଭରେ ଫଳ ନାଇଁ ॥ ୦ ॥

ବଳଭଦ୍ର— ପେଟ ଜଳୁଛି ଭାଇ !
ବଗ୍ଭର ବେଳ କାହିଁ ?
ହୁଅନ୍ତୁ ଯେଉଁ ଜାତି—ପେଟ ତ ଯାଏ ତାତି
ଭୋକେ ମରୁଛେଁ ଦୁଇ ଭାଇ ॥ ୦ ॥

ଜଗନ୍ନାଥ— ପାରୁଶ ବାଡ଼ି ଦେଇ
ରହିଛି ଦାସୀ ଗ୍ଭହିଁ
ଆଗରେ ଗ୍ଭଲ ଭାଇ,
ଆସିବା ମୁହଁ ହାତ ଧୋଇ ॥

(ଆଗରେ ବଳଭଦ୍ର ଓ ପଛରେ ଜଗନ୍ନାଥ ଗ୍ଭଲିଗଲେ)

---

## ଚତୁର୍ଦ୍ଦଶ ଦୃଶ୍ୟ

(ଠାଆ ବଡ଼ା ହୋଇଛି । ବଳଭଦ୍ର ଓ ଜଗନ୍ନାଥ ଭୋଜନରେ ବସିଛନ୍ତି । ହାତରେ ପୋଡ଼ପିଠା ଥାଳଧର ମାଳଣୀ ପହଞ୍ଚିଲା । )

ବଳଭଦ୍ର—ବାଃ, ଦିବ୍ୟ ଭୋଜନ ମିଳିଗଲା । ଆଉ କୁଆଡ଼େ ଆଇଲ ତୁମେ ?

ମାଳତୀ— ( ଗୀତ )

ମହାଦେଈଙ୍କର ଆଦେଶେ ଆସିଲି,
ପୋଡ଼ପିଠା ଦୁଇଖଣ୍ଡି ଦେବବୋଲି
ଦୁହିଁଙ୍କ ଭୋଜନ ଶେଷେ ।
ଅନୁମତି ହେଲେ ମରଶିବ ମୁହିଁ
ଜଣା କରିବାକୁ ଆଉ କିଛି ନାହିଁ
କହୁଛନ୍ତି ଦେବୀ ବାଣୀ ଆସିବାକୁ
ଭୋଜନ କରିଲେକ ତୋଷେ ॥

ବଳଭଦ୍ର— ( ଗୀତ )

ଦେବୀଙ୍କୁ ତୁମ୍ଭର ଜଣାଇବ ଯାଇ,
ସୁଖରେ ଭୋଜନ କଲୁ ଦୁଇଭାଇ ।
ତାଙ୍କ ଉପକାର ସୁଝିହେବ ନାହିଁ
ମରୁଥିଲୁଁ ଭୋକ ଶୋଷେ ॥

ମାଳତୀ—ଆଉ କିଛି ଲୋଡ଼ା ଥିଲେ କୁହନ୍ତୁ ?

ବଳଭଦ୍ର—ଏ ଅମୃତ ଭୋଜନପରେ ଆଉ କିଛି ଦର୍କାର ନାହିଁ । ତୁମ ମହାଦେଈଙ୍କୁ ଏକଥା କହିବ, ଯାଅ ।

ମାଳତୀ—ଗଲି ତେବେ ।

ବଳଭଦ୍ର—ହଁ ଯାଅ, ଆମେ ମୁହଁ ଧୋଇବାକୁ ବାହାରିଲୁଁ ।

ମାଳତୀ—ହଉ ଆଜ୍ଞା । ( ଘର ଭିତରକୁ ମାଳତୀ ଚାଲିଗଲା । )

ବଳଭଦ୍ର—ଜଗନ୍ନାଥ ! ବଡ଼ ଆଶ୍ଚର୍ଯ୍ୟ କଥା । ଲକ୍ଷ୍ମୀଙ୍କ ହାତରନ୍ଧଣା ପରି ଲାଗୁଛି । ଆହୁରି ଆଶ୍ଚର୍ଯ୍ୟର କଥା ଯେ ଆମର ଭୋଜନ ଶେଷରେ ପୋଡ଼ପିଠା କିପରି ପରଶାଗଲା ? ଏସବୁ ତ ଆମର କଳ୍ପନାରେ ମଧ୍ୟ ଆସୁନାହିଁ ।

ଜଗନ୍ନାଥ—ମୁଁ ତ ସେଇକଥା ଭାବୁଛି ।

ବଳଭଦ୍ର—ଚାଲ, ଉଠ । ହାତ ମୁହଁ ଧୋଇବା ।
( ମାଳତୀ ପୁଣି ଆସିଲା । )

ମାଳତୀ—ଆଜ୍ଞା, ପୁଣି ଆସିଲି । ମହାଦେଈ ଡାକୁଛନ୍ତି ସାନ ଭାଇନାଙ୍କୁ ଟିକଏ ତାଙ୍କ ପାଖକୁ ଯିବାକୁ ।

ବଳଭଦ୍ର—ହଉ, ମୁହଁ ଧୋଇସାରି ସେ ଯିବେ ।

ମାଳତୀ—ମୁଁ ତେବେ ବାହାର ଦୁଆରେ ଅପେକ୍ଷା କରୁଛି ।

ବଳଭଦ୍ର—ହଉ ।

( ମାଳତୀ ଘର ଭିତରକୁ ଓ ବଳଭଦ୍ର, ଜଗନ୍ନାଥ ପାଣି-- ନୋଠା ଧରି ବାହାରକୁ ଗଲେ । )

## ପଞ୍ଚଦଶ ଦୃଶ୍ୟ

( ଲକ୍ଷ୍ମୀ ଆସନରେ ବସିଥିଲେ । ଆସିଲା ମାଳତୀ `

ଲକ୍ଷ୍ମୀ—କଅଣ ହେଲା ? ...ଡାକିଲୁ ?

ମାଳତୀ—ବ୍ରାହ୍ମଣନନା ଦୁହେଁ ଭୋଜନସାରି, ମୁହଁ ଧୋଇବାକୁ ଗଲେ । ମୁହ ଧୋଇସାରି ସାନ ଜଣକ ଆସୁଛନ୍ତି । ଦୁଆରେ ହେବେଣି । ଡାକ ଆଣିବି ଭିତରକୁ ?

ଲକ୍ଷ୍ମୀ—ଯା ଯା, ମାଧବୀକୁ କହ, ଗୋଟିଏ ସୁବର୍ଣ୍ଣ ଥାଳରେ ଫୁଲ ଆଉ ବନ୍ଦାପନା ସାମଗ୍ରୀ ନେଇ ବେଗେ ଆସିବ ଏଠିକି ।

ମାଳତୀ—ଆଜ୍ଞା, ମଣିମା, ମାଧବୀ ତ ଏଇଠି ଅଛି । ତାକୁ କହି ଦେଇ ଦୁଆର ମୁହଁରେ ସାନ ଜଣକୁ ଡକାଇବି ।

ଲକ୍ଷ୍ମୀ— ଯା, ଆଉ ଡେରି କରନାହିଁ । (ମାଳତୀ ଚାଲିଗଲା )
(ମାଧବୀ ବନ୍ଦାଣଥାଳ ନେଇ ପହଞ୍ଚିଲା )

ଲକ୍ଷ୍ମୀ— ଆରେ, ମନକଥା ଜାଣିଲାପରି ଧୂପ ତ ଲଗାଇକରି ଆଣିଛୁ ମାଧବୀ, ସେଇଠି ଥୋଇଦେଇ ଯା ।

(ମାଧବୀ ଚାଲିଗଲା ବନ୍ଦାଣଥାଳ ରଖିଦେଇ ) ( ଲକ୍ଷ୍ମୀ ବନ୍ଦାଣ-ଥାଳ ଉଠାଇଲାବେଳେ ଜଗନ୍ନାଥ ପ୍ରବେଶ କଲେ...... )

ଜଗନ୍ନାଥ— (ଗୀତ)

ଥାଉ ଥାଉ ଥାଉ ମହାଦେଈ !
ମୋତେ ଆଉ ଲାଜ ଦିଅ ନାହିଁ
କଲା କରମର ଫଳ ହାତେ ହାତେ
ଭୋଗୁଲୁଣି ଆମେ ଦୁଇ ଭାଇ ॥

ତୁମେ ମୋର ନ ଧର ଦୋଷ
ବଡ଼ଭାଇ ଦେଲେ ଆଦେଶ
ଚଣ୍ଡାଳୁଣୀ ସେବାପୂଜା ପାଉଥିଲ
ଦେଖିଥିଲେ ନିଜ ଆଖିରେ ସେହି ॥
ବୁଲିବୁଲି କାର ଦୁଆର
କାହିଁ ନ ମିଳିଲା ଆହାର
ଥାଉ ଆଉ କଥା ଗାଆଁରେ ଗଣ୍ଡାରେ
ତଡ଼ି ଦେଲେ ଲୋକେ ଦୁଆର ଦେଇ ॥
ମନେ ଆଜ ରୋଷ ନ ଧର
ଚାଲ ଆମ୍ଭ ସଙ୍ଗତେ ଫେର
ବଳଭଦ୍ର ଭାଇ ଭ୍ରମ ବୁଝିଲେଣି
କଥା ରଖ ଆମ ଦୁଃଖକୁ ଚାହିଁ ॥

ମହାଲକ୍ଷ୍ମୀ—ମୁଁ ବାହୁଡ଼ି ଯିବାକୁ ରାଜି ଅଛି, ବାକି ମୋ ଅନୁରୋଧ ରଖିଲେ ଯିବି ।

ଜଗନ୍ନାଥ—କଅଣ କୁହ ।

ମହାଲକ୍ଷ୍ମୀ— (ଗୀତ)

ପୂଜା ଭୋଗ ଲଗି ବ୍ରାହ୍ମଣ, ଚଣ୍ଡାଳ ଭେଦାଭେଦ ନ ରହିବ,
ଛଡ଼ାଇ ଚଣ୍ଡାଳ-ହାତରୁ ବ୍ରାହ୍ମଣ ପ୍ରସାଦ ସୁଖେ ପାଇବ,
ଅଇଁଠା ଶଙ୍କୁଡ଼ି ବୋଲି ମଣି କେହି ହାତ ଆଉ ନ ଧୋଇବ,
ପରସାଦ ପାଇ ହାତକୁ ଆପଣା ମଥାରେ ବୁଲାଇ ଦେବ ।
ସତ୍ୟ କର ମହାବାହୁ !
ଜଗତେ ପ୍ରଘଟ ହୋଇବ ଏକଥା
ଅନ୍ୟଥା ନୋହିବ ଆଉ ।

ଜଗନ୍ନାଥ— ମହାଦେଈ ଗୋ ମହାଦେଈ,
ସବୁ ତୁମ୍ଭ କଥା ପାଳିତ ହୋଇବ
ଅନ୍ୟଥା ହୋଇବ ନାହିଁ ।

ମନକଥା ଶୁଣ ମୋର,
ଆମ୍ଭଠାରେ ଯେଉଁ ଥାଳ ବଢ଼ା ହେବ
ପ୍ରସାଦ ନାମଟି ତାର ॥
ବ୍ରାହ୍ମଣ, ଚଣ୍ଡାଳ ଏକଠେ ଭୁଞ୍ଜିବେ
ଏହି କଥା ହେଉ ସାର
ଚାଲ ମନ୍ଦିରକୁ ଚାଲ ।
ବଡ଼ଭାଇ ତେଣେ ଚାହିଁ ରହିଛନ୍ତି
ହେଲାଣି ଆରତି ବେଳ ॥
(ହାତ ଧରି ଲକ୍ଷ୍ମୀଙ୍କୁ ନେଇଗଲେ)

---

## ଷୋଡ଼ଶ ଦୃଶ୍ୟ

( ଶ୍ରୀମନ୍ଦିର । ଶ୍ରୀ ଜୀଉଙ୍କ ସନ୍ଧ୍ୟାରତି ବଢ଼ୁଥିଲା ।
ସେବକମାନେ ଶଙ୍ଖଧ୍ୱନି କରି ପ୍ରଣାମ କଲେ )

ମିଳିତ କଣ୍ଠ— (ଗୀତ)

ଜୟ ମା କରୁଣାମୟୀ ସାଗର-ନନ୍ଦିନୀ
ଜୟ ଜୟ ଜଗନ୍ନାଥ-ଅଙ୍କ-ବିଳାସିନୀ
ହୁଅ ପରସନ୍ନା ।
ଜଗତମାତା ମା !
ଜଣାଉଛୁଁ ଚରଣେ ପ୍ରଣମି ॥ ୧ ॥
ଚଉବର୍ଗ ଫଳ ଦାୟିନୀ
କରୁଣାକର ଗୋ ଜନନୀ !
ଭକତ ତୋ ପଦେ, ରହୁ ନଶି, ଦିନ
ଏତିକି ମାଗଇ ମାଗୁଣି ॥ ୨ ॥

---